# ବିଜୟ ଦୁନ୍ଦୁଭି

ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର

—ପ୍ରକାଶକ—

ଲୋକ ପ୍ରତିଷ୍ଠାନ (୧)

ବୀର ହରେକୃଷ୍ଣପୁର ଶାସନ

ପୁରୀ

୧୯୬୨

ମୂଲ୍ୟ ୫ ୦।

ଦଶଟି ନୂଆପଇସା

ଓଁ

# ବିଜୟ ଦୁନ୍ଦୁଭି

ଇରାବତୀ କୂଳେ ବାଜିଲା ଦୁନ୍ଦୁଭି
ଜାଗିଲେ ଭାରତ ବୀର
"ଚଲେ ଦିଲ୍ଲୀ" 'ଜୟ- ହିନ୍ଦ' ବୀର ରବେ
ପୂରିଲା ତା ପୁର ନୀର ।

ଏହି ପରବତ ବନଲତା ପାଟରେ
ଆମରି ଜନମଭୂମି
କରବାଳ କରେ ଶୂଳରେ ନାସୀରେ
ପ୍ରତିପଦେ ତାକୁ ନମି ।

ବନ୍ଦମୀ ବନ୍ଦନ ରାଣା ରଣପତ୍ତ
ପ୍ରତାପର ବୀର ପିଣ୍ଡ
ମିଶି ରହିଅଛି ଏ ଦେଶ ଧୂଳିରେ
ଏଥିରେ ମସ୍ତକ ମଣ୍ଡ ।

ଆଲପସ ଗିରି- ଗୁହାରେ ଯବନ
ଲୁଚି ରହିଥିଲା ଯେବେ
ସିନ୍ଧୁ ଉଠୁଥିଲା ଉଚ୍ଛୁଳ ସଘନେ
ଝଙ୍କାରିତ ବେଦ ରବେ ।

ଯେ ଦେଶର ପ୍ରତି- ଶୋଣିତ ପାଟଳ
ବିନ୍ଦୁ କୋକନଦ କଳି
ଝଲି ଉଠୁଥିଲା ରଣନଦୀ ଜଳରେ
ଯଶୋରବ କରେ ଝଳ ।

ଶିବାଜୀର ବାଜୀ  ରଜପୁତ ବୀର
ଚଇତକ ଗତି ବାଟେ
ରଘୁ ରାଜ୍ୟ ନଟେ  ଘୋଟୁଥିଲା ଘୋର
ଦୁରୁଦ୍ଦିନ ଆଚମ୍ବିତେ ।
ବଇରୀ ଦୁର୍ଦ୍ଧର ଦୁର୍ଗ  ଧ୍ୱଂସି ଦିନେ
ଯେ ଦେଶ ରମଣୀ ଶ୍ରୀର
ବନଗିରି ଲତା  ମରୁରେ ଲୁଗୁଇ
କରୁଥିଲା ତାଙ୍କୁ ଗ୍ଲେର ।
ପ୍ରତାପୀ ମୋଗଲ  ଶିଖୁଥିଲା ଦିନେ
ଯେ ଦେଶ ରମଣୀ ରଣ
ଚ୍ଛେଦୁଥିଲେ ଶତ  ଲଲନା ଯେ ଦେଶେ
ଅଗ୍ରାନ୍ତ ଅଗମ୍ୟ ବନ ।
ଯେ ଦେଶର ମାଟି  ମୁଠାକରେ ଅଛି
କୋଟି ବୀର ରକ୍ତମିଶା
ସେ ଦେଶେ ଜନମି  କେତେ କାଳ ଆଉ
ଭୋଗିବୁ ଏ କାଳ ନିଶା ?
ହିମାଦ୍ରି ଶିଖର  ତୁଷାର ଶ୍ରୃଙ୍ଗରେ
ଧବଳ ଜାହ୍ନବୀ ଶ୍ରୀର
ଭସିଯାଉଥିଲା  ଦୂର ପରଦେଶେ
ଯେ ଦେଶର ଯଶୋଗିର ।
ଅଲକ୍ଷିତେ କେବେ  ଶୁଣିଲେ ବିଦେଶୀ
ଭାରତୀ ଭାରତୀ କଥା
ଶିଖୁଥିଲା କେତେ  କଳା କଉଶଳ
ସରମେ ନୁଆଇଁ ମଥା ।

କେତେ ବଇଭବେ	ସାଜୁଥିଲା ତୋର
ଭାରତ ଜନମୀ ତନୁ
ପାଳିବା ପାଇଁ ତା	ପରଜା ନିକରେ
ନ ଭୁଲରେ ଭାଇ ମନୁ ।

ଅନନ୍ତ ଜଳଧି	ପରିଖା ବେଷ୍ଟାଳ
ରଚିଣ ଭୂଧରମାଳା
ରଖିଥିଲା ତୋର	ଜନମୀ ଯତନେ
ବିବିଧ ସମ୍ପଦ କଳା ।

ସୁବର୍ଣ୍ଣ ରଜତ	ମଣି ମାଣିକରେ
ମଣ୍ଡିଥିଲା ନିଜ ଘର
ଖଣ୍ଡିବାକୁ ତାର	ତନୁ ଦକଦକ
ଲୁଣ୍ଡି ବୁଲାଇଲେ ବୈର ।

ସମୁଦ୍ର ଗରଭେ	ଗରବେ ସରଜ
ସୁବିଶାଳ ସେତୁ ପଥ
ଯେ ଦେଶର ରଘୁ-	କୁଳପତି ରାମ
ମାରିଥିଲେ ଦଶମାଥ ।

ଅଲଂଘ୍ୟ ଶାସନ	କେଶରୀ ହୋଇ ତୁ
ନ ଫିଟାଇଲୁ ରେ ଆଖି
କୁରଙ୍ଗ ନିକରେ	ନାଚିଲେ ତୋ ଉରେ
ତୁ ହୋଇଲୁ ନିରମାଖି ।

ହରି ହୋଇ ତୁହି	ହୋଇଲୁ ହରିଣ
ହରିଣେ ମାରିଲେ ଯୋଡ଼
ସଙ୍ଗୀନ ହରିଣ	ଶୃଙ୍ଗକୁ ଡରିଲୁ
କର ପଦେ ତୋର ବେଡ଼ୀ ।

କେତେ ତ ଖୁଆଇ ସାଇଥିଲେ ମାତା
ସ୍ୱବଧ ବଳେ ତୋ ବପୁ
ଦୂରୁ ଆସି ବୈର ହରିନିଏ ତାକୁ
କି ମନ୍ତ୍ର ଏବେ ରେ ଜପୁ ?

ଧର କରବାଳ ଦିଅରେ ମାତାଙ୍କ
ପଦେ ରିପୁ ଶିରେବଳି
ପିଇ ସେ ରିପୁର ରୁଧିର ବାରୁଣୀ
ମାତି ଉଠ ମହାବଳୀ ।

ତୋହର ଜନନୀ କରୁଣ ନାଦରେ
ଫାଟିଯାଏ ସାରା ଧରା
କି ଶାନ୍ତି ମଦିରା କରିଛି ରେ ତୋତେ
ଏତେବେଳେ ଆତ୍ମହରା ।

ମାଗେ ଭିଖାରୁଣୀ ପରି ତୋ ଜନନୀ
ବୈରୀଙ୍କ ଚରଣେ ଧନ
ନ ଶୁଣି ଲବେ ସେ ଭରଇ ବୋଇତ
ଦେଖାଇ ସଙ୍ଗୀନ ମୂନ ।

ଫିଟିବନି କି ରେ ନୟନ ତୋହର
ତୁଟିବନି କି ରେ ଦଶା
ରଟିବନି କି ରେ ସ୍ୱଦେଶେ ମଳୟ
ତୋହର ଗରବ ଭାଷା ।

ତୋହର ଦେଶର ମଧୁପ ନ ଯାଉ
ସ୍ୱଦେଶ ବଲ୍ଲରୀ ପାଶେ
ତୋହର କୋକିଳ ଡାକୁରେ ନିରତ
ତୋହର ରସାଳ ଦେଶେ ।

ତୋହର ତଟିନୀ ଅମୃତ ରସରେ
ହସୁ ତୋ କେଦାରମାଳ
ସେ ସ୍ୱର୍ଗୀୟ ସୁଧା- ଫଳେ ହୋଇ ବଳୀ
ଭୁଲିଯାଅ ମହାକାଳ ।
ତୋହର ସରସୀ- ନୀକରେ ହସନ୍ତୁ
ଅନନ୍ତ କମଳ ବରେ
ନବୀନ ଭାରତ ଗରବ ରବିର
ଅରୁଣ ମଞ୍ଜୁଳ କରେ ।
ଗାଇଉଠୁ କୃଷୀ- ବଳ ତୋ ଦେଶରେ
ଗରବେ ବିଜୟ ଗୀର
ପୁଲକେ ହୃଦୟ ବଲ୍ଲକୀରୁ ତାର
ଝରୁରେ ଅମୃତ ଝର ।
ପସରି ନଭ ସେ ଫୁଟି ଉଠୁ ତାର
ଶାରଦ ପରବ ଶଶୀ
ନବୀନ ଅଶନ ବସନ ବିଳାସେ
ହସନ୍ତୁ ଜଗତବାସୀ ।
ତୋହର କବିଙ୍କ ଲେଖନୀ ମୁନରୁ
ସ୍ରବୁରେ ଶ୍ରାବଣ ଧାର
ନଚ୍ଚଇ ଭୁବନ କଳାପ ମିଶୁ ସେ
ଆନନ୍ଦ ଉଦଧି ଉର ।
ନଗେନ୍ଦ୍ର ନଗରେ ନାଚନ୍ତୁ ରୁଦ୍ରର
ନଖିଳ ଭୁବନ ଶିବ
ସୁରଧୂନୀ ଶିରେ ଶତଧାର ହୋଇ
ନଚୁଉ ଅନନ୍ତ ଜୀବ ।

ନିକୁଞ୍ଜ ନିକଟରେ ହସି ଉଠନ୍ତୁ ରେ
ନିଖିଳ ଜନନୀ ଶ୍ୟାମା
ମାଧବ ମୂର୍ଚ୍ଛନରେ ପୁଲକି ଉଠନ୍ତୁ
ତା ସଙ୍ଗେ ଭାରତରମା ।

ଜାଗର ଉଠୁରେ ଜଡ଼ର ହୃଦୟ
ଅବଲୋକ ସେହି ଛବି
ମୁଞ୍ଜର ଉଠନ୍ତୁ ମାରବ ବିଟପୀ
ସୁଧା ବରଷନ୍ତୁ ପବ ।

ବିଶ୍ୱ ମଣ ଚୋର ଜନମ ଭୂଇଁରେ
ଅପସରୁ ହୃଦୁଁ ଭୟ
ବିଶ୍ୱ ଭ୍ରମଣରେ ପଦେ ପଦେ ଭୁଞ୍ଜ
ଅନୁଭବ ମହାଜୟ ।

ଅନନ୍ତ ଜଳଧି ତରିବା ପାଇଁ ତ
ଡରିବାକୁ ନାହିଁ କାଳ
ହେମନ୍ତ ପରବେ ଭାସିଯାଅ ଦୂରେ
ଭସାଇ ବୋଇତ-ମାଳ ।

ଜନନୀ ଜନମ- ଭୂମିରୁ ବଳି ଏ
ଜଗତେ ନାହିଁ କେ ବଡ଼
ଜାଗିଲା ଜଗତ ତାଙ୍କର ସେବାରେ
ତୁମ୍ଭେ ଏକା ହେଲୁ ଜଡ଼ ।

ଜନମି ଜଗତେ ଜନମ ଭୂମିର
ଲୁହ ନପୋଛିଲେ ଜନ,
ଜୀଇଁବାଠାରୁ ତା ମରଣ ଭଜିବା
ବହୁ ଗୁଣେ ମହୀୟାନ ।

ଜଳପି ଉଠୁ ଛୁ ପ୍ରଳାପ କର ରେ
ଅଜ୍ଞାତ କାରନ୍ତ କେତେ
କହଣ କଳାପେ ବିଳପି ଉଠନ୍ତ
ତୋର ପରିଜନ ହେତେ ।

ଆଷାଢ଼ ହରଷେ ଗରଜଇ ଘନ
କଦମ୍ବ ଅମ୍ବର ଦେଶେ
ଶରତେ ଗରଜେ ନାହିଁ ରେ ସେ ଅଉ
ହସଇ ଧବଳ ଯଶେ ।

ଗୁଞ୍ଜରି ଉଠଇ ମଧୁପ ସୁରଭି
ସୁମନ ଚଳପେ ରହି
ସୁମନ ସୁଷମା ସରିଲେ ସୁମନେ
କେବେହେଁ ତ ହସନ୍ତ ନାହିଁ ।

ଶରଦ ବିମଳ ସରସୀ ହୃଦୟେ
ହସଇ କମଳଲତା
ବରଷା କାଳରେ ଶୁଣିଛ କି କେବେ
ତାର ହସିବାର କଥା ?

ମୁକୁଳ ଉଠିଲେ ମଳୟେ ରସାଳ
ଗାଏ ସେ ସରାଗେ ଗୀତ
ବକୁଳ ବିଭବ ସରିଲେ ଆଉ କି
ବୋବାଏ ବସନ୍ତ ଦୂତ ?

ବିକଚ ଧବଳ ଶଶୀକରେ ହସି
ତୋଳଇ ଗମ୍ଭୀର ତାନ
ସେ ସରିଲେ ଲସି ଲଭଇ ଜଳଧି
ବେଳା ତଳେ ତଳେ ସ୍ଥାନ ।

ଅଧୋଗତ ହୋଇ ଗରଜୁ କେତେ ରେ
ନାହିଁ ତୋ ମୁହଁରେ ଲଜ
କିଛି ଯେବେ ତୋର ଥିଲଣି ବିଭୂତି
ଦେଖାଅ ସେମାନ ଆଜ ।

ଗର୍ଜି ଗର୍ଜି ଭୁବନରେ କେହି
ହୋଇନାହିଁ କେବେ ବଡ଼
ଥିଲୁ ବୋଲି ତୋର କହିଲେ କହିବେ
ଥିଲି ତୋର ନାଆଁ ରଡ଼ ।

ଗରଜିଲୁ ମେଘ ଗରଜା କୁକୁର
କରି ନପାରନ୍ତି କିଛି
ବୃଥାରେ ଗରଜ ଅରଜୁ କେବଳ
ଦୁନିଆଁ ଯାକର ଛି ଛି ।

ବୃଥା ଗରଜନ ବରଜି ଅରଜ
ଅସୀମ ଶକତି ତୋର
ଛିଡ଼ିଯିବ ଏହି ଗୋଲାମୀ ଡୋରରେ
ଘୁଡ଼ି ପଳାଇବେ ଶ୍ୱେର ।

ପଚ୍ଚିଶ କୋଟି ତ ଭାଇ ଭଉଣୀ ରେ
ନୁହଁ ତୁଚ୍ଛ ହୀନବଳ
ପର ଚରଣରେ ରହି ରହି ଖାଲି
ହଜିଛି ତୋ ବଳକଳ ।

ଉଠରେ ଅସୀମ ବଳରେ ଉଜାଣି
ଉଠନ୍ତୁ ଭଉଣୀ ଭାଇ
ସେହି ରଣନାଦ ଉଚ୍ଛୁଳି ଉଠିଲେ
ଭାଜିଯିବ କେତେ ଧାଇ ।

ତୋହର ଦେଶରେ ହଗରେ ପିଲାଏ
ସାଗରର ଜଳେ ହେଲେ
ଶ୍ୱେତଦ୍ୱୀପ ବୋଲି ଦସ୍ୟୁ ପରବଶେ
ହୃଡ଼ ଖଣ୍ଡେ ଘୁଞ୍ଚିଗଲେ ।

ଚୁଡ଼ି ନଥିଲେ ତା ନଥାନ୍ତେ ଧବଳ
ଫୁଲାଇବା ପାଇଁ ଗୁଣ୍ଡି
ତୋହର ଗଳାରେ ଲଗାଇ ନଥାନ୍ତେ
ଆଜି ନିଦାରୁଣ କାତି ।

ଜାତୀୟ ପତାକା ଉଡ଼ାଇ ଉଠ ରେ
ଅନନ୍ତ ଗଗନେ ରଙ୍ଗେ
ମିଶାଇଦିଅ ସେ- ହାଡ଼ ଖଣ୍ଡ ଆଜି
ଅନନ୍ତ ଜଳଧି ସଙ୍ଗେ ।

ପୋଛିଦିଅ ତାର ନାମ ଏ ଭବରୁ
ଫିରଙ୍ଗୁ ହୋଇ ତୁ ଗଲ
ଫର ଫର ହୋଇ ଫିରଙ୍ଗୀ ପତାକା
ଚୁମ୍ବୁ ରେ ପଶ୍ଚିମ ଭାଲ ।

ମହୀଧର ବର ଅହିରାଜ ତୁହି
ତୁହିଁ କେବେ ମହୀଲତା
ରହିବେ କି ତଳେ ପ୍ଲବଙ୍ଗମକୁଳ
ଉଠାଇଲେ ତୁଚ୍ଛ ମଥା ?

ଗୋଟି ଗୋଟି ଆଜି ବୁଝାଇବ କେତେ
ଅବସାନ ହେଲା କାଳ
ଲୋଟି ନଯାଅ ରେ ମଦିରା ମଦରେ
ଧର ଦରେ କରବାଳ ।

ଘୋଟିଯାଇଥିଲା    ଭାରତ ଗଗନେ
ଘୋର ଦୁର୍ଦ୍ଦିନ ଘନ
ଗୋଟି ଗୋଟି ହୋଇ    ଫୁଟି ଉଠିଲେଣି
ବିମଳ ତାରକାଗଣ ।

ଚନ୍ଦ୍ରମା ଅନ୍ତରୀକ୍ଷ    ହିମକର ଦେଖ
ଉଠିଆସେ ହସି ହସି
ଚକୋର ଉଡ଼ଇ    ସୁଧା ସଞ୍ଚରବେ
ଗୃହକ ଗଲେଣି ଖସି ।

ଅଗସ୍ତି ଉଠିଲେ    ଦୂର ଗଗନରେ
ଅନନ୍ତ ଜଳଧି ଶିଳା
ଇନ୍ଦ୍ରବଷ୍ଟା ଆଜ    ତଟ ତାଡ଼ି ତାରେ
ନଜରେ ପ୍ରଳୟ ଲୀଳା ।

ବିଲ ପରବତ    ପୁରପଲ୍ଲି ଭରି
ବିଜୟ ଉତ୍ସବ ଉଠେ
ବିଜୟ ଚଅଁର    ଛଟେ କେତେ ଦେଖ
କାଶତଣ୍ଡୀ ଫୁଲ ଫୁଟେ ।

ଧବଳ କମଳ    କୁମୁଦେ ଧବଳ
ହେଲଣି ତଟିନୀ ଜଳ
ହସି ଭାସିଲେଣି    ସୁନୀଳ ଗଗନେ
ଧବଳ ଜଳଦମଳ ।

ବିଜୟ ବାଜଣା    ବଜାଇ ବିପିନେ
ବିହଙ୍ଗ ନିକର ଭାଇ
ଉଠିଲେଣି ଜୟ    ଭାରତ ଜନନୀ
'ଜୟମା' 'ଜୟମା' ଗାଇ ।

ହିନ୍ଦୁ କବରସ୍ଥାନ    ବାଉଁଶ ବ୍ରାହ୍ମଣ
ପଠାଣ ସେବକଙ୍କ ଗୁଡ଼
ଦିଲ୍ଲୀ ଦରବାର    ଆଡ଼କୁ ଭାରତ
ଯୋଦ୍ଧାଏ ଗୃହରେ ମାଡ଼ ।

ସେହି ତ ଆମର    ସରଗ ସେହି ରେ
ନଖିଲ ଭାରତ ଗତ
ତାର ହିତ ପାଇଁ    ଢାଳିଦିଅ ଭାଇ
ସରବ ଶକତି-ମତ ।

କିଏ ହିନ୍ଦୁ ଆଉ    କିଏ ରେ ପଠାଣ
କିଏ କବରସ୍ଥାନ ହାଡ଼
ଧୀର ହୋଇ ଥରେ    ଭାବରେ ହୃଦୟୁ
ଏ ଭେଦ ଯିବରେ ଗୁଡ଼ ।

ଭାଇ ତୋର କହେ    ରହିମ୍ ଯାହାକୁ
ତୁହି କହୁ ତାକୁ ରାମ
ଭାଇ ତୋର କହେ    କୋରାନ ବୋଲିରେ
ତୁହି ଦେଲୁ ବେଦ ନାମ ।

କେହି ଅବା ବୋଲୁ-    ଥାଏ ଦେବାଳୟ
କେହି ଅବା ମସଜିଦ
କେହି ବା ଗିର୍ଜା    ବୋଲଇ ତାହାକୁ
ଏଥିକି କାହିଁକି ଜିଦ ?

ଯେଉଁ ପ୍ରକାଶରେ    ହସନ୍ତି ଗଗନେ
ତରଣି ତାରକା ଶଶୀ
ସେହି ପ୍ରକାଶର    ପରମାଣୁ ତୁହି
କାହିଁ ତୋ ହୃଦୟେ ମସୀ ?

ପରମ ପୁରୁଷ ପରକାଶ ହୋଇ
ଭରସି ନ ଯାଅ ଭାଇ ।
ଅମିୟ କିରଣ ସୁଧାକୁ ହରାଇ
ନ ପକାଟରେ ବିଷ ଖାଇ ।

ସମନେଷେ ମେଳ ଦେଖିଲେ ଜଗତେ
ସବୁ ତ ସୁଷମାମୟ
ସୁଷମାର ସୁଧା ସୁମଧୁର ଶ୍ରୁତି
ହରଇ ନିଖିଳ ଭୟ ।

ପରମ ପୁରୁଷ କହିଲେ ମୁଁ ଏକ
ହୋଇବି ଅନନ୍ତ ବୋଲି
ସଙ୍ଗେ ସଙ୍ଗେ ବିଶ୍ୱ ବିକାଶର ମହା
ରଙ୍ଗମଞ୍ଚ ଗଲା ଖୋଲି ।

'ଉଠରେ ସହସା' ବୋଲି ଏ ସୁଭାଷ-
-ବଚନ ପଶିଲା କାନେ
ଉଠିଲେ ଭାରତ ଜୀବନ ଫୁଲାଇ
ହୃଦୟୁ କି ମହାମାନେ ।

ନେତାଜୀ ତୁମର ପରସାଦେ ଆଜି
ଭାଜିଲା ଏ ମଦନିଦ
ଆଉ କି ରହିବ ଜନମି ଯାତନା
କାହିଁ ତାର ପରମାଦ ?

ଆମର ହୃଦୟେ ବହିଯାଉ ଆଜି
ପ୍ରଳୟର ମହାଛବି
ପୂର୍ବ ପୁରୁଷର ହାଡ଼ମାଳ ତହିଁ
ଯାଉ ଅବିରତେ ଦ୍ରବି ।

ବୀର ନ ଜାଣଇ          ଶଙ୍କିଲେ ଜଳଧି
ମରୁ ମନ୍ଦାରଣା ରସା
ସମର ବୀରର          ସୁଧାଙ୍କର ଶିଖା
ବଖାଣି ତା ମଧୁରସା ।
କଣ୍ଠପାତେ ବୀର          ମରଣ ବରଣ
ମାଳିକାକୁ ହେଲେ ବଳେ
ଧନ୍ୟପାରେ ବୀର          କରଗୁହା ଚୂଳେ
ଗିରିବର କୁନ୍ତୁହଳେ ।

ପରିହରି ସବୁ          ବୈଭବକୁ ବୀର
ବିଜୟକୁ କରେ ସାର ।
ବିଜୟର ଛଡ଼ା          ବୀର ମନୋରଥେ
ନ ସମ୍ଭବ କେବେ ହାର ।

କଣ୍ଠ ପାରେ ବୀର          ସପତ ଜଳଧି
ପଲକ ଭିତରେ ଚନ୍ତୁ
ଧଣପାରେ ଯାହା          ପରି ଶତ ଶତ
ହେଲେ ବୀର କମଣ୍ଡଳୁ ।
ଅସ୍ଥି ଦଧୀଚିର          କମ୍ପି ଉଠିଲା ରେ
ଅଗସ୍ତି ଋଷିର ପାଣି
ଲୁପ୍ତ ହୋଇଗଲେ          ଦୃପ୍ତ ଦନୁଜ ରେ
ସପ୍ତଜଳନିଧି-ପାଣି ।

ମଥାଣ କରରେ          ଧାଇଁଲେ ଯୁବକ
ଧାଇଁଲେ ସ୍ଥବିର ଶିଶୁ
ଧାଇଁଲେ ରମଣୀ          ଥରିଲା-ଧରଣୀ
ଜାଗରି ଉଠିଲେ ପଶୁ ।

କଏ ତୁ କଚର   କରୁଅଛୁ ମୋର
ଜନମ ଭୂମିକୁ ଲୁଟି
ଶୋଷ ଶୋଷି ମୋର   ଭାଇ ଭଉଣୀଙ୍କି
ଉହ୍ଲାଇଛୁରେ ପୁଟି ।

ଆଜ ଏ କଟିର   ଶାଣିତ ଖଡ଼୍ଗେ
ଯିବୁ ନାହିଁ କଏ କଟି
କହି ଏହିପରି   ଧରଲ ଯୁବଙ୍କ
ଓଷ୍ଠାର ରଧୂର ଚୁଟି ।

ଝାନସି ଦୁରୁଗୁଁ   ଉଠିଲେ ଦୁର୍ଗା
ସହଚରୀ ମହାଲକ୍ଷ୍ମୀ
ହଜାର ହଜାର   ବୀରେନ୍ଦ୍ର ରମଣୀ
ପକାଇଲେ ଚାକୁ ଡ଼ାକି ।

ଧାଇଁଲେ ଅବଳା   ପ୍ରବଳ ବେଗରେ
ମାରିବାକୁ ରିପୁକୁଳ
ଲଳନା ଛଟିମା   ନ ମାନିଲ ଆଉ
ପଥାପଥ କୂଳାକୂଳ ।

ନ ମାନିଲ ବୀର   ଧନ ଜନ ଘର
ନ ମାନିଲ ବୀର ଜାନ୍ତି
ଫିଙ୍ଗି ଦେଇ ସବୁ   ପଙ୍ଗ୍ ପରଭେଦ
ସମରରେ ଗଲା ମାତ୍ତି ।

ଝଣ୍ଡ ନଗରବାସୀ   ଝଦାଶ୍ରିତ ଶତ
ହୃଦୟୁ ରୁଧିର ଧାରେ
ଲେଖି ପଠାଇଲେ   ସହସ୍ର ଲଳନା
ପତ୍ରମାନ ଏକାଧାରେ ।

"ପ୍ରତିଜ୍ଞା ଆମର ଜୀବଥିବା ଯାଏ
ନେତାଜୀ ନ ଯିବ ଭାଜ
ନେତାଜୀ ଝଣ୍ଠ ସେନା ପରେଠରେ
ନାଚୁଥିବ ପଦଗଜ ।
ସ୍ୱପ୍ନୀଭୂତ ହୋଇ ଦେଖୁଥିଲା ବୀର
ଭାରତ ଯୁବକ କୃତି
ଅବଳାର ସ୍ୱପ୍ନେ- ରମ ଗତି ଦେଖି
ଧରି ନ ପାରିଲା ଧୃତି ।
ପ୍ରଶାନ୍ତ ହୃଦୟେ କହିଲେ ନେତାଜୀ
ଛାଡ଼ ଏ ଭାରତ ରସା
ପଳାଇଲା ରିପୁ ପଳାଏ କେଶରୀ
ପରିସରୁ ଯଥା ଶଶା ।
ନ ମାରିଲା ବୀର ଭୁଜଙ୍ଗମଣି ତାକୁ
ରିପୁ ଚାଲିଗଲା ଛାଡ଼ି
ଭାରତ ଜନନୀ ହସି ଉଠିଲେ ରେ
ପିନ୍ଧି ବିଜୟର ଶାଢ଼ୀ ।
ପଳାଇଲା ରିପୁ ନବଦ୍ୱୀପ ଯାଏ
କହିଲା ଫେରବରବେ
ଯାହାର ଇଙ୍ଗିତେ ନାଚୁରେ ଯୁବକ
ନାହାନ୍ତି ନେତାଜୀ ଭବେ ।
ଉଡ଼ିଯାଇଛି ତା ପରାଣ ବିହଙ୍ଗ
ଉଡ଼ାଜାହାଜରୁ ଖସି
ହଜାର ନେତାଜୀ ଆଜି ରେ ଭାରତ
ଯୁବକ କହିଲା ହସି
ମରି ନାହିଁ କେବେ ମରିବ ନାହିଁ ସେ
ତିନିକାଳେ ତିନିପୁରେ
ସୁଭାଷ ସୁନ୍ଦର ମୃତ୍ୟୁଞ୍ଜୟ ହୋଇ
ଶୋଭିବେ ଧରଣୀ ଉପରେ ।

ଚରଣବେ ନାହିଁ ଦୁରନ୍ତ କତବ
ବଚନେ ତୋହର ରଜା
ଅସାଧୁ ମାରବେ ନାହିଁ ମଜା ଆଉ
ସାଧୁ ନ ଭୋଗିବେ ସଜା ।
ଖଳ ପ୍ରତାରକ ନରପତିଙ୍କର
କେବେ ନ ପଶିବେ କତି
ଅଶ୍ୱପତି ସୁତା ସମ୍ଭବ ଲଭିବେ
ସତୀ ସତ୍ୟବାନ ପତି ।
କପିଳ ନଗରୀ ଯୁବରାଜ ମୋର
ଅହିଂସା ରଚିବେ ଭବେ
ଅଖିଳ ଭୁବନ ଦୁଃଖ-ବିନାଶନ
ଦୁଃଖ ନ ରଖିବେ ଲବେ ।
ବଜଣି ଉଠିବ ମୋହର ଦେଶର
ସଉରଭେ ସାର ଧରା
ବିଶ୍ୱ ବିମୋହନ ଗୁଣ ମାଧୁରୀର
ସ୍ରବିପିବ ଶତଧାରା ।
ଖଣ୍ଡାଏତ ମୋର ସମର ସାଜବେ
କ୍ଷତ୍ରିୟେ ଧରିବେ ଦଣ୍ଡ
ଭୁଟାଇବେ ଦ୍ୱିଜେ ବେଦକାଣ୍ଡ ଦଣ୍ଡ
ଲଭିବେ ପାଷଣ୍ଡ ଭଣ୍ଡ ।
ମନୁ ପରାଶର ଯାଜ୍ଞବଲ୍କ ମୋର
ସଜାଡ଼ିବେ ସ୍ମୃତି ପଥ
ସେହି ପଥେ ପଥେ ଅବାରିତ ଗତି
କରିବ ମୋ ମନୋରଥ ।

———

ଅଧୀନ "ନବ ଭାରତ" ପ୍ରେସରେ ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାଶଙ୍କ ପାଖେ ସହକାରୀ ରୂପେ କାର୍ଯ୍ୟ କରୁଥିବା ବେଳେ ଆସାମରେ ବୀରଶ୍ରେଷ୍ଠ ସୁଭାଷଙ୍କର ସ୍ୱାଧୀନ ସରକାର ଗଢ଼ା ଚାଲିଥିଲା । ସ୍ୱାଧୀନ ଭାରତର ସହସ୍ରାଂଶୁ ସେତିକିବେଳେ ହିଁ ଅଦ୍ଧାଧିରେଶ୍ୱର ବ୍ରିଟିଶ ସରକାରକୁ ଏ ଦେଶରୁ ବିଦାୟ ନେବାକୁ ବାଧ୍ୟ କରିଥିଲା । ଇଂରାଜୀ ପତ୍ରିକାରୁ ଅନୁବାଦ କରିବା ଅବସରରେ ଏହି ମହାମାନ୍ୟ ବୀର ପୁରୁଷଙ୍କର ଉତ୍ସାହ ବାଣୀ ସମ୍ବଳିତ ଏହି କ୍ଷୁଦ୍ର ଆଲେଖ୍ୟଟି ଅଧୀନ ରଚନା କରିଥିଲା । ପାଠକମାନଙ୍କର ହାର୍ଦ୍ଦିକ ଆବୃତ୍ତି ମାତ୍ର ଏ ଦୀନ ଲେଖକର ଶ୍ରମ ସାର୍ଥକ କରିବ ବୋଲି ଆଶା ।

ବିନୀତ

ଲେଖକ

ନେକ ପ୍ରତିଷ୍ଠାନ (୧)

ବୀର-ହରେକୃଷ୍ଣପୁର ଶାସନ

ମୁଦ୍ରାକର ଶ୍ରୀ କିଶୋରଚନ୍ଦ୍ର ମିଶ୍ର, କବିତା ପ୍ରେସ, କଟକ – ୧